ISSN: 2456-9194, Vol. II, Issue. I, June 2018

# ପ୍ରତ୍ୟୟ

(Journal of Odia Language, Culture and Science)

JournalHomepage: http://cphfs.in/research.php

# କେନ୍ଦୁଝର ପ୍ରଜା ଆନ୍ଦୋଳନ ଓ ବିପ୍ଳବୀ ଧରଣୀଧର

**ଡ. ସୁମନ୍ତ୍ର ନାଏକ**

**ଅଧ୍ୟାପକ, ଓଡ଼ିଆ ବିଭାଗ, ଧରଣୀଧର ସ୍ୱୟଂ ଶାସିତ ମହାବିଦ୍ୟାଳୟ, କେନ୍ଦୁଝର**

Email:naik.sunantra2@gmail.com

***ସଂକ୍ଷିପ୍ତ ପରିଚୟ :*** *ମଣିଷ ଜନ୍ମ ନିଏ ମୃତ୍ୟୁବରଣ କରେ । ସମୟ ସ୍ରୋତରେ ତାର ଜୀବନର ସତ୍ତା ହଜିଯାଏ । ମାତ୍ର, ସମାଜ ସେହିମାନଙ୍କୁ ମନେ ରଖେ, ଇତିହାସ ସେହିମାନଙ୍କୁ ତାର ସ୍ୱର୍ଣ୍ଣ ପୃଷ୍ଠାରେ ଜାଗାଦିଏ, ଯେଉଁମାନଙ୍କର ତ୍ୟାଗ, ତପସ୍ୟା, ବଳିଦାନ, ସମାଜ ପ୍ରତି  ଉତ୍ସର୍ଗୀକୃତ ହୋଇଥାଏ । ଏମିତି ଏକ ସ୍ୱତନ୍ତ୍ର ପୃଷ୍ଠାର ମହାନାୟକ ବିପ୍ଳବୀ ଧରଣୀଧର ନାଏକ  । ୧୮୯୧ କେନ୍ଦୁଝର ପ୍ରଜା ଆନ୍ଦୋଳନରେ ଦରିଦ୍ର ନିଷ୍ପେଷିତ ମଣିଷମାନଙ୍କର ନେତୃତ୍ୱନେଇ ରାଜତନ୍ତ୍ର ବିରୁଦ୍ଧରେ ସଂଗ୍ରାମ କରି ଇଂରେଜମାନଙ୍କର ଆଧିପତ୍ୟକୁ ସେ ଦୋହଲାଇ ଦେଇଥିଲେ। କେନ୍ଦୁଝରଠାରୁ ଅଳ୍ପଦୂର କୁସୁମିତା ଗ୍ରାମରୁ ଆଳି ରାଜ୍ୟରେ ସନ୍ୟାସୀ ଜୀବନ ପର୍ଯ୍ୟନ୍ତ ଜୀବନ ଯାତ୍ରା । ଉଚ୍ଚ ଶିକ୍ଷିତ ବିଚାରବନ୍ତ ସ୍ୱାଭିମାନୀ ଏହି ଜନଜାତି ନେତା କେନ୍ଦୁଝର ଜନଜାତି ମଣିଷମାନଙ୍କ ହୃଦୟରେ ଏକ ସ୍ୱତନ୍ତ୍ର ନାମ । ଆଜି ଧରଣୀଧର କେବଳ ଜଣେ ବ୍ୟକ୍ତିର ନାମ ନୁହେଁ ସେ ଏକ ବିପ୍ଳବର ନାମ । ଧରଣୀଧର ଏକ ଆହ୍ୱାନ,  ଏକ ଚେତନା । ଆହ୍ୱାନର ମୃତ୍ୟୁ ନାହିଁ କି ଚେତନାର ମୃତ୍ୟୁ ନାହିଁ । ସେ ଅମର ଆଉ ଇତିହାରେ ଅମ୍ଲାନ ।*

***ପ୍ରମୁଖ ଶବ୍ଦାବଳୀ :*** *ପ୍ରଜା ଆନ୍ଦୋଳନ, ଫୁଲବିବାହୀ, ଆହ୍ୱାନ, ରାଜତନ୍ତ୍ର, ବେଠି, ରାଜ୍ୟାଭିଷେକ ।*

କେନ୍ଦୁଝର ରାଜନୈତିକ ଇତିହାସର ଦୁଇଟି ଘଟଣା ସମଗ୍ର ରାଜନୈତିକ ତଥା ତଦାନନ୍ତିକ ସମୟର ଇଂରେଜ ସରକାରଙ୍କ ଦୋହଲାଇ ଦେଇଥିଲା ତାହା ହେଉଛି ୧୮୬୮ ଓ ୧୮୯୧ ମସିହାର ପ୍ରଜା ଆନ୍ଦୋଳନ । ଅଳ୍ପ କିଛି ଘଟଣାର ଭିନ୍ନତା ଥିଲେ ବି ଦୁଇଟି ଆନ୍ଦୋଳନର କାରଣ ଥିଲା ସମାନ । କାରଣ ଗୁଡିକ ହେଉଛି ପ୍ରଜାମାନଙ୍କ ଉପରେ ମାତ୍ରାଧିକ ପରିମାଣରେ କର ବସାଇବା; ଭୂୟାଁମାନଙ୍କ ମଧ୍ୟରେ ପୁରୁଷାନୁକ୍ରମିକ ଭାବରେ ପ୍ରାପ୍ୟ ଗଡନାୟକ ପଦବୀକୁ ହଟାଇବା; ଭୂୟାଁମାନଙ୍କର ପରଂପରା ଅନୁସାରେ ରାଜ୍ୟାଭିଷେକ ନକରାଇବା; ଫୁଲ ବିବାହୀ ପ୍ରଥାକୁ ରାଜା ଗ୍ରହଣ କରିବା । ଯେଉଁ ପ୍ରଥାନୁସାରେ ଦାସୀପୁତ୍ର ରାଜା କରାଯାଇଥାଏ, ସେହି ପ୍ରଥାକୁ ଫୁଲ ବିବାହ ପ୍ରଥା କୁହାଯାଏ। ସବର୍ଣ୍ଣମାନେ ଅସବର୍ଣ୍ଣମାନଙ୍କୁ ଘୃଣା କରି ଭୂୟାଁ ଓ ଅନ୍ୟାନ୍ୟ ଆଦିବାସୀମାନଙ୍କଠାରୁ କର ଆଦାୟ କରିବା; ବିନା ମଜୁରୀରେ (ବେଠି) କାମ କରାଇବା; ପାରିଷଦମାନେ ପ୍ରଜାମାନଙ୍କ ଦ୍ୱାରା ନିଜର କାମ ମାହାଳିଆରେ କରାଇବା; ଏଥିସହିତ ଏହି ଦୁଇଟି ପ୍ରଜା ଆନ୍ଦୋଳନର ଗୁରୁତ୍ୱପୂର୍ଣ୍ଣ କାରଣଥିଲା ଗୋଟିଏ ସ୍ୱୟଂସମ୍ପୂର୍ଣ୍ଣ ଆଦିମ ଜନଜାତି ଭୂୟାଁ ମାନଙ୍କର ସଂସ୍କୃତି ଓ ପରଂପରାକୁ ହତ୍ୟା କରିବାର ପ୍ରଚେଷ୍ଟା। ଦୁଇଟିଯାକ ବିଦ୍ରୋହର ସଂଗଠିତ ହୋଇଥିଲା ରାଜତନ୍ତ୍ର ବିରୁଦ୍ଧରେ । ୧୮୬୮ ମସିହାରେ ପ୍ରଜା ଆନ୍ଦୋଳନର ନେତୃତ୍ୱ ଉଦ୍ଦାମ ଜନଜାତି ଯୁବକ ରତ୍ନା ନାଏକ ଓ ନନ୍ଦ ନାଏକ ନେଇଥିଲାବେଳେ ୧୮୯୧ ମସିହାରେ ସଂଗଠିତ ଜନ ଆନ୍ଦୋଳନର ନେତୃତ୍ୱ ବିପ୍ଳବୀ ଧରଣୀଧର ନାଏକ ନେଇଥିଲେ । ଏହାର ଅନ୍ୟ ନାମ ଥିଲା ଧରଣୀ ବିଦ୍ରୋହ । ଏହି ବିଦ୍ରୋହଥିଲା ଅତ୍ୟାଚାରିତ ପ୍ରଜାର ମୁକ୍ତି ଆନ୍ଦୋଳନ । ଊନବିଂଶ ଶତାବ୍ଦୀର ଶେଷ ଦଶକରେ ସଂଗଠିତ ଏହି ଆନ୍ଦୋଳନ ଓଡିଶା ତଥା ଭାରତର ଗଡଜାତ ଇତିହାସରେ  ରାଜତନ୍ତ୍ର ବିଲୋପ ସାଧନ ପାଇଁ ସର୍ବପ୍ରଥମ ଜନ ଆନ୍ଦୋଳନ । ଏହି ଆନ୍ଦୋଳନର ସମସ୍ତେ ଥିଲେ ଏହି ମାଟିର ସନ୍ତାନ ତଥା ଦେଶୀୟ ଜନସାଧାରଣ । ନେତା ଭୂ-ସୂତ ଧରଣୀଧର, ଯାହାଙ୍କର ଜୀବନ ଯାତ୍ରାଥିଲା ବନ୍ଧୁର ଆଉ କୋଠର ।

ଅପୂର୍ବ ସୁଷମାମଣ୍ଡିତ ସବୁଜ ବନବନାନୀ ଘେରା ରତ୍ନଗର୍ଭା କେନ୍ଦୁଝର । ବୈତରଣୀର ପୂତ ଜଳଧାରାରେ ପବିତ୍ର ଏହାର ମାଟି । ମା’ ତାରିଣୀଙ୍କର ଶୁଭାଶିଷରେ ସୁଖୀ ଏହାର ମଣିଷ । ଗନ୍ଧମାର୍ଦ୍ଦନର

ବିଶାଳ ବପୁ ଏଠାକାର ପ୍ରାଚୀନ ଜନ ଜାତି ଭୂୟାଁ ତଥା ଜୁଆଙ୍ଗମାନଙ୍କର ଅଭୟ ଆଶ୍ରୟ । ଭାରତରେ ଥିବା ସମଗ୍ର ଗଡଜାତ ରାଜ୍ୟ ମଧ୍ୟରେ କେନ୍ଦୁଝର ଗଡଜାତ ରାଜ୍ୟର ଅଛି ସ୍ୱତନ୍ତ୍ର ମର୍ଯ୍ୟାଦା । ଜୁଡିଆ ପାହାଡର ପାଦ ଦେଶରେ କେନ୍ଦୁଝର ଗଡର ଅବସ୍ଥିତି । ଏକ ଛୋଟ ଓ ସୁନ୍ଦର ସହର । କେନ୍ଦୁଝର ସହରରୁ ୧୫ କିଲୋମିଟର ଦୂର ସୁରମ୍ୟ ଗନ୍ଧମାର୍ଦ୍ଦନର ପାଦଦେଶରେ କୁସୁମ ପରି ଶୋଭିତ କୁସୁମିତା ଗାଁ । କୁସୁମିତା ସୌନ୍ଦର୍ଯ୍ୟର ଗନ୍ତାଘର । ପ୍ରକୃତିର ନୈସର୍ଗିକ ବିଳାସ ଚିର ବିଦ୍ୟମାନ । ବଣ ପାହାଡ ଘେରା, ଆଦିମଜନ ଜାତି ଭୂୟାଁମାନଙ୍କର ବସତି ଏହି ଗାଁରେ । ଦାଣ୍ଡ ଦୁଇପାଖରେ ନୂଆଣିଆ ଚାଳଘର ସବୁ ଶୃଙ୍ଖଳିତ ପଙ୍କ୍ତିରେ ଦଣ୍ଡାୟମାନ ସ୍କାଉଟ୍ ପିଲାପରି । ଆମ୍ବ ପଣସ ଗଛରେ ଭରପୁର ଗାଁର ପରିବେଶ । ଗାଁ ମଝିରେ ମଣ୍ଡଘର । ଭୂୟାଁ ଯୁବକମାନଙ୍କର ଶ୍ରମକ୍ଳାନ୍ତି ଜୀବନକୁ ଖୁସି ପ୍ରଦାନ କରୁଥିବା ଆଧୁନିକ କ୍ଲବ୍ ଘର । ଭୂୟାଁଯୁବକ ଧାଙ୍ଗଡା ଭାବରେ ଜଣା । ମଣ୍ଡଘରର ସମସ୍ତ ରକ୍ଷଣା ବେକ୍ଷଣ ଦାୟିତ୍ୱ ଏହି ଧାଙ୍ଗଡାମାନଙ୍କର ମଣ୍ଡଘର ସମ୍ମୁଖର ପଣଷଗଛ ମୂଳରେ ବର୍ଷସାରା ଜଳୁଥାଏ ନିଆଁଧୁନୀ । ଧ୍ୱନୀ କାଠକୁ ଧାଙ୍ଗଡାମାନେ ଜଙ୍ଗଲରୁ ସଂଗ୍ରହ କରିଆଣନ୍ତି । ଗାଁର ଯୁବତୀ (ଧାଙ୍ଗଡି)ମାନେ ଗାଁର ଏକ ନିର୍ଦ୍ଦିଷ୍ଟ ଘରେ ରାତିରେ ଶୟନ କରନ୍ତି । ସେମାନେ ଶୋଇବା ଘରକୁ ଧାଙ୍ଗଡି ବସା କୁହାଯାଏ । ଧାଙ୍ଗଡିମାନେ ଗ୍ରାମର ଜଣେ ବୟସ୍କା ମହିଳାର ହେପାଜତରେ ରହନ୍ତି । ମଣ୍ଡଘର ଲିପାପୋଛାର ଦାୟିତ୍ୱ ଏମାନଙ୍କ ହାତରେ ନ୍ୟସ୍ତ ଥାଏ ।

ସରଳ ନିଷ୍କପଟ ନିରୀହ ଆଦିବାସୀ ଜନଜାତିମାନଙ୍କର ଲୀଳାଖେଳା ଏହି କୁସୁମିତା ଗାଁରେ । ଗାଁ ସର୍ଦ୍ଦାରର ପୁଅ 'ଲକ୍ଷଣ ନାଏକ' । ଲକ୍ଷଣ ନାଏକର ପତ୍ନୀ ବାଇଗଣୀ ଦେବୀ ଲକ୍ଷଣ ନାଏକ ଏବଂ ବାଇଗଣୀ ଦେବୀଙ୍କଠାରୁ ୧୮୬୪ ମସିହା ମେ ୫ ତାରିଖ ଦିନ ଜନ୍ମଗ୍ରହଣ କରନ୍ତି ଧରଣୀଧର ନାଏକ । ଧରଣୀଧରଙ୍କ ସାତ ଭାଇଭଉଣୀ । ସେମାନେ ହେଉଛନ୍ତି ୧-ଗୋପାଳ ନାଏକ, ୨-ତାରା, ୩- ଟୁନି, ୪-ଆସଲ, ୫-ଅମାପୀ, ୬-ମଧୁମତୀ ଓ ୭-ଧରଣୀଧର । ଧରଣୀଧର ଥିଲେ ସର୍ବକନିଷ୍ଠ । କୁସୁମିତା ଅଂଚଳର ଲୋକ ମୁଖରେ ଆଲୋକିକ ତାଙ୍କର ଶୈଶବ । ପିଲାବେଳେ ନାଗସାପ ଫଣାତଳେ ଶୋଇଥିଲେ ସେ । ଆଉ ଥରେ ହାତୀ ପଲଙ୍କ ଭିତରେ ଆବିଷ୍କାର କରାଯାଇଥିଲା ତାଙ୍କୁ । ବିଚକ୍ଷଣ ଓ ପ୍ରତିଭାଧର ବାଳକ ଧରଣୀଧର । ପିତାମହ ଭୂୟାଁ ସର୍ଦ୍ଦାର ଥିବାରୁ କେନ୍ଦୁଝର ରାଜ ପ୍ରାସାଦ ମଧ୍ୟକୁ ଧରଣୀଧରଙ୍କର ଥିଲା ଅବାଧ ପ୍ରବେଶ ପ୍ରସ୍ଥାନ । ଅମାୟିକ ବ୍ୟବହାରରେ ସୌମ୍ୟକାନ୍ତ ଶରୀର ତଥା ବିଚକ୍ଷଣ ବୁଦ୍ଧିମତା ଅପୁତ୍ରିକ ମହାରାଣୀ ବିଷ୍ଣୁପ୍ରିୟାଙ୍କୁ କରିଥିଲା ଅଭିଭୂତ । ସେ ମହାରାଣୀଙ୍କ ପାଳଟି ଯାଇଥିଲେ ଧର୍ମପୁତ୍ର ।

ଧରଣୀଧରଙ୍କ ପ୍ରାଥମିକ ଶିକ୍ଷା ସମାପ୍ତ ହୁଏ ଜନ୍ମସ୍ଥାନ କୁସୁମିତା ଗ୍ରାମରେ । ପ୍ରାଥମିକ ଶିକ୍ଷା ସମାପ୍ତକରି କେନ୍ଦୁଝର ଗଡରୁ ମାଧ୍ୟମିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେ ରାଜବୃତ୍ତିରେ କଟକଠାରେ ସର୍ଭେୟର ଶିକ୍ଷା ସମାପ୍ତ କରି କେନ୍ଦୁଝରକୁ ପ୍ରତ୍ୟାବର୍ତ୍ତନ କରନ୍ତି. ୧୮୮୭ ମସିହାରେ ସମାପ୍ତ ହୁଏ ଧରଣୀଧରଙ୍କ ସର୍ଭେଟ୍ରେନିଂ । ସେ ୨୩ ବର୍ଷ ବୟସରେ କେନ୍ଦୁଝର ଷ୍ଟେଟର ଅବୈତନିକ କର୍ମଚାରୀ ଭାବରେ ସର୍ଭେୟର ଭାବରେ ରାଜ କାର୍ଯ୍ୟରେ ଯୋଗଦାନ କରନ୍ତି । ନିଜର କର୍ତ୍ତବ୍ୟନିଷ୍ଠା, ଅମାୟିକ ବ୍ୟକ୍ତିତ୍ୱ ଦ୍ୱାରା ସେ ନିଜର କରିପାରିଥିଲେ ରାଜକର୍ମଚାରୀଙ୍କଠାରୁ ଆରମ୍ଭକରି ସାଧାରଣ ଜନତା ପର୍ଯ୍ୟନ୍ତ । ରାଜମହଲରେ ମୋଗଲବନ୍ଦୀ ଅଂଚଳର ଅନେକ ସବର୍ଣ୍ଣ ଲୋକ ଥିବାରୁ ସେ ସେମାନଙ୍କ ଦ୍ୱାରା ହେଉଥିଲେ ଘୃଣିତ । ଚାକିରୀ କାଳରେ ସେ ଯେତେବେଳେ ସିରସ୍ତାକୁ ଯାଆନ୍ତି ସବୁକର୍ମଚାରୀଙ୍କ ପାଇଁ ମେଜ ଚୌକିର ବ୍ୟବସ୍ଥା ଥିଲେ ମଧ୍ୟ ତାଙ୍କ ପାଇଁ ଭୂଇଁ ଉପରେ ପଡିଥାଏ ଅଖା । କର୍ତ୍ତବ୍ୟ ଆଗରେ ବ୍ୟବସ୍ଥାକୁ ନ୍ୟୁନକରି ସେ ନିଜର କାମ କରିଛନ୍ତି । ପ୍ରତିବାଦ କରିନାହାଁନ୍ତି । ଏସବୁ ସତ୍ତ୍ୱେ ବିଚିତ୍ରାନନ୍ଦ ଦାସଙ୍କ ଚିନ୍ତାଧାରା ଥିଲା ଭିନ୍ନ । ସେ ଘୃଣା କରୁଥିଲେ ଧରଣୀଧରଙ୍କ । ବଣମୂଲକରୁ ଆସି ବଣୁଆ ପିଲାଟା ରାଜକର୍ମଚାରୀ ଭାବରେ ଗୁରୁତ୍ୱ ନେବ ଏହାକୁ ସେ ସହଜରେ ଗ୍ରହଣ କରିପାରୁନଥିଲେ । ଦୂରଦର୍ଶୀ ଭାବରେ ସେ ଚିନ୍ତା କରିଥିଲେ, ଯଦି ଧରଣୀଧର ଏହିପରି ନିଷ୍ଠାର ସହିତ କାମ କରନ୍ତି ତା'ହେଲେ ଦିନେ ଧରଣୀ ସମସ୍ତ ରାଜକର୍ମଚାରୀଙ୍କୁ ପଛରେ ପକାଇ ବହୁ ଉର୍ଦ୍ଧ୍ୱକୁ ଚାଲିଯିବେ ।

ବିଚିତ୍ରାନନ୍ଦ ଦାସ ହେଉଛନ୍ତି କେନ୍ଦୁଝର ଷ୍ଟେଟର ସହକର୍ମୀ ମ୍ୟାନେଜର । ସେ ବଡ ଈର୍ଷାପରାୟଣ କୁଚକ୍ରୀ ଅତ୍ୟାଚାରୀ ଆଉ ଷଡଯନ୍ତ୍ରକାରୀ, କଟକରେ ଚାକିରୀ କାଳରେ ଷ୍ଟାମ୍ପ ପେପର ଦୁର୍ନିତୀରେ ଦଣ୍ଡିତ ହେଲେ ସେ ଏବଂ ଆନନ୍ଦପୁରରେ ଜଣେ ପେସ୍କାରକୁ ହତ୍ୟାକରିବା ଅଭିଯୋଗରେ ସେ ହୋଇଥିଲେ ଅଭିଯୁକ୍ତ । ବିଚିତ୍ରାନନ୍ଦ ଦାସର ଚିନ୍ତାଧାରା ଥିଲା ଯୁଗେ ଯୁଗେ ଧରି ଅବହେଳିତ ଥିବା ଆଦିବାସୀ ସମାଜର ଏହି ଯୁବକଟା ଆସି ସବର୍ଣ୍ଣମାନଙ୍କ ସହିତ କାମ କରିବ ଏହା ଠିକ୍ କଥା ନୁହେଁ ତେଣୁ ଅନ୍ୟ ରାଜକର୍ମଚାରୀମାନଙ୍କ ସହିତ ମିଶି ଧରଣୀଙ୍କୁ ଚାକିରୀରୁ ବାହାର କରିବା ପାଇଁ ସେ ଆରମ୍ଭ କରିଦେଲେ ଉଦ୍ୟମ । ଧରଣୀଧର ସବୁ ଜାଣୁଥିଲେ ମଧ୍ୟ ଘାସ ପଥର ପରି ସବୁ ସହିଯାଉଥିଲେ । ମାତ୍ର ରାଜକର୍ମଚାରୀମାନଙ୍କର ଏତାଦୃଶ୍ୟ ବର୍ଣ୍ଣ ବୈଷମ୍ୟ ନୀତି ଓ ପାତର ଅନ୍ତର ନୀତି ଯୋଗୁଁ ସ୍ୱାଧୀନ ଚେତା ଧରଣୀଧର ରାଜକାର୍ଯ୍ୟ ତ୍ୟାଗ କରି ମୟୂରଭଞ୍ଜ ଷ୍ଟେଟ୍କୁ ପଳାଇଯାଇଥିଲେ ।

କେନ୍ଦୁଝର ଷ୍ଟେଟ୍ ସିଂହଭୂମି ମଧ୍ୟରେ ୧୮୯୦ ମସିହାରେ ହୋଇଥିଲା ସୀମାବିବାଦ । ବୈତରଣୀ ନଦୀ ପଠାରେ ଗୋଧୁଳି ଗ୍ରାମର ଉର୍ବର ଜମି ଲୁଙ୍ଗିକୁଦକୁ ସିଂହଭୂମିର ଜୟନ୍ତିଗଡର କିଛି ଲୋକ ଜମିକୁ ଦଖଲ କରିଥିଲେ । ଫଳରେ ତାଙ୍କୁ ନେଇ ଦୁଇ ଷ୍ଟେଟ୍ ମଧ୍ୟରେ ଭୂମି ବିବାଦ ଲାଗିଥିଲା । ରାଜାଙ୍କଠାରୁ ଖବର ପାଇ

ଧରଣୀଧର ନିଜ ମାଟିର ସ୍ୱାର୍ଥ ରକ୍ଷା ଲାଗି ମୟୂରଭଂଜରୁ ଜମିବିବାଦ ତୁଟାଇବା ପାଇଁ କେନ୍ଦୁଝର ଆସିଲେ । କିନ୍ତୁ, ଏଠାରେ ମଧ୍ୟ ବିଚିତ୍ରାନନ୍ଦ ତାଙ୍କ ଖଳବୁଦ୍ଧି ଧରଣୀକୁ ବଦନାମ କରିବା ପାଇଁ ଲଗେଇଥିଲେ । ଜମିମାପ ଚେନକୁ ନ ନେଇଥିଲେ ମଧ୍ୟ ଧରଣୀଧର ବିବାଦୀୟ ଜମିକୁ ପାଦରେ ମାପି ଖୁବ୍ ସହଜରେ ସମାଧାନ କରି ଦେଇଥିଲେ । ଫଳରେ ପାଦରେ ମାପ ହୋଇଥିଲେ ମଧ୍ୟ ସିଂହଭୂମିର ଭାରପ୍ରାପ୍ତ ଇଂରେଜ କର୍ମଚାରୀ ସୀମାରେଖା ନିଷ୍ପତ୍ତି କାଗଜରେ ସ୍ୱାକ୍ଷର କରିଥିଲେ ।

ଜମିବିବାଦରେ ସମାଧାନ କରି ଭଉଣୀ ଭିଣୋଇ ଘରକୁ ବୁଲିଯାଇଥିବା ସମୟରେ ସେ ଶୁଣିବାକୁ ପାଆନ୍ତି ମାଛକାନ୍ଦଣା ଯୋଡ କେନାଲ ବେଠିରେ ଭୂୟାଁମାନଙ୍କ ଦ୍ୱାରା ଖୋଳାଯାଉଛି । ଭାଇ ଗୋପାଳ ଏବଂ ଅନ୍ୟମାନେ ଏହାର ପ୍ରତିବାଦ କରିବାରୁ ଗୋପାଳକୁ ସ୍କୁଲଘର ଛପର ନକରିବା ଅଭିଯୋଗରେ ଜେଲ ଦିଅନ୍ତି ଏବଂ ହରିକାଠରେ ବାନ୍ଧନ୍ତି । ତାଙ୍କ ପାଖକୁ ଏକଥା ଆହୁରି ପହଞ୍ଚିଲା ଯେ ଯଦି ଧରଣୀ କେନ୍ଦୁଝର ଆସନ୍ତି ତାଙ୍କୁ ମଧ୍ୟ ଗିରଫ କରାଯିବ । ମାଛ କାନ୍ଦଣା ଯୋଡ ଖଳାର କାହାଣି ଖୁବ୍ ଲୋମହର୍ଷଣକାରୀ ।

ଗରିବ ପ୍ରଜାମାନଙ୍କୁ ଠେଙ୍ଗାପାଳି ଦ୍ୱାରା ନିଷ୍ପତ୍ତି କରି, ରାଜ୍ୟର ସମସ୍ତ ପ୍ରଜାକୁ ଜୋର ଜବରଦସ୍ତ ଏହି କାର୍ଯ୍ୟରେ ନିୟୋଜିତ କରାଯାଇଥିଲା । ପ୍ରଜାମାନେ କାମ କରି ନିଜେ ଘରୁ ଆଣିଥିବା ଖାଦ୍ୟ ହିଁ ଖାଉଥିଲେ । ରାଜାଙ୍କ ତରଫରୁ କୌଣସି ଖାଦ୍ୟ କି ପାଉଣାର ବ୍ୟବସ୍ଥା ନଥିଲା । କିନ୍ତୁ ଏକଥା ସତ୍ୟ ଯେ କେନାଲ ଖୋଳା ପାଇଁ ଟଙ୍କାର ବଜେଟ୍ ଫକୀରମୋହନ ସେନାପତିଙ୍କ ଦ୍ୱାରା ହୋଇଥିଲେ ମଧ୍ୟ ବିଚିତ୍ରାନନ୍ଦର କୁଚକ୍ରରେ ଫକୀରମୋହନ ସେନାପତି ବି ପ୍ରଜା ଉତ୍ପୀଡନର କାରଣ ବନିଯାଇଥିଲେ । ଏହି ପ୍ରଜା ଉତ୍ପୀଡନରୁ ମହିଳା ଓ ଶିଶୁମାନେ ମଧ୍ୟ ବାଦ ଯାଇନଥିଲେ । ଏକଥା ଶୁଣିବା ପରେ ଧରଣୀଧର ମାନସିକ ସ୍ତରରେ ବିଦ୍ରୋହୀ ହୋଇପଡିଥିଲେ ।

ରାଜାଙ୍କଦ୍ୱାରା ପ୍ରଜାଙ୍କ ପ୍ରତି ଏହି ଅନ୍ୟାୟ ଅତ୍ୟାଚାରର ପ୍ରତିବାଦ ସ୍ୱରୂପ ଜଣେ ଶିକ୍ଷିତ ମଣିଷ ଭାବରେ ଧରଣୀଧର ଦରଖାସ୍ତ ଲେଖି ଜଣାନ୍ତି ବଙ୍ଗର ନବାବ ତଥା କଟକର କଲେକ୍ଟରଙ୍କୁ । ମାତ୍ର, ତାଙ୍କ ନିକଟକୁ କୌଣସି ଉତ୍ତର ନପାଇ ସେ ନିଜର ଜ୍ଞାତି ବନ୍ଧୁମାନଙ୍କୁ ଏହି କଥା ଜଣାନ୍ତି । ଭିଣୋଇ ନରେନ୍ଦ୍ର ମହାପାତ୍ର ଭୂୟାଁ ପୀଢର ସର୍ଦ୍ଦାରଙ୍କୁ ଏକତ୍ରିତ କରି ଏହି ପ୍ରଜାଉତ୍ପୀଡନର କଥା ଆଲୋଚନା କରନ୍ତି। ଶେଷରେ ଏକତ୍ରିତ ଭୂୟାଁ ସର୍ଦ୍ଦାରମାନେ ସାମୁହିକ ଭାବରେ ନିଷ୍ପତ୍ତି ନିଅନ୍ତି ଏକ ଜନ ଆନ୍ଦୋଳନର ଏବଂ ଏହାର ନେତା ଭାବରେ ସେମାନେ ଘୋଷିତ କରନ୍ତି ଧରଣୀଧର ନାଏକଙ୍କୁ । ଏହି ଜନ ଆନ୍ଦୋଳନକୁ ବ୍ୟାପକ କରିବାପାଇଁ ଗାଁକୁ ଗାଁ ଖବର ଭୂୟାଁ ସଂସ୍କୃତିର ବାହକ ସିଆଡି ଗଣ୍ଠି ଦ୍ୱାରା ପ୍ରଚାର କରାଗଲା । ରାଇସୁଆଁ ଆମ୍ବତୋଟାଠାରେ ଏକତ୍ରିତ ହୋଇଥିଲେ ହଜାର ହଜାର ଆଦିବାସୀମାନେ । ସେହିଠାରେ ହିଁ ସମସ୍ତ ଆଦିବାସୀ ଜନତା ଧରଣୀଧର ନାଏକଙ୍କୁ ରାଜା ଭାବରେ ଘୋଷଣା କରିଥିଲେ ଏବଂ କେନ୍ଦୁଝର ରାଜାଙ୍କୁ ଗାଦିଚ୍ୟୁତ କରିବାର ନିଷ୍ପତ୍ତି ନେଇଥିଲେ । ଗଣତାନ୍ତ୍ରିକ ପ୍ରକ୍ରିୟାରେ ଶାସକ ନିର୍ବାଚନ ହେବାର ପ୍ରକ୍ରିୟା ଆଜକୁ ୧୨୦ ବର୍ଷ ତଳେ ଭାରତ ସ୍ୱାଧିନ ହେବାର ଅନେକ ବର୍ଷ ପୂର୍ବରୁ ରାଇସୁଆଁ ଆମ୍ବତୋଟାରେ ଜଣେ ଆଦିବାସୀ ଯୁବକର ନେତୃତ୍ୱରେ ସମ୍ଭବ ହୋଇଥିଲା । କେବଳ ସେତିକି ନୁହେଁ ଗୋଟିଏ ଜନମଙ୍ଗଳ ରାଷ୍ଟ୍ରର ପରିକଳ୍ପନା ଏହିଠାରେ ହିଁ ସେହି ଆଦିବାସୀ ଯୁବକ କରିଥିଲେ ।

ମାତ୍ର, ବିଡମ୍ବନାର ବିଷୟ ଗୋପାଳ ନାଏକ, ନରେନ୍ଦ୍ର ମହାପାତ୍ରଙ୍କ ଦ୍ୱାରା ବନ୍ଦି ହୋଇଥିବା ଫକୀରମୋହନ ସେନାପତିଙ୍କର ଚକ୍ରାନ୍ତକୁ ବୁଝିପାରିନଥିଲେ ଧରଣୀଧର । ଗୋଟି ଆଦର୍ଶ ରାଷ୍ଟ୍ରର ପରିକଳ୍ପନାରେ ଜଣେ ବିଚକ୍ଷଣ ମଣିଷକୁ ମନ୍ତ୍ରୀ ଭାବରେ ରଖିବାର ନିଷ୍ପତ୍ତି, ଭାଇ ଗୋପାଳ ଓ ନରେନ୍ଦ୍ର ମହାପାତ୍ରଙ୍କର କଥାକୁ ନ ବୁଝିପାରି ଧରଣୀଧର ନାଏକ ବନ୍ଦୀ ହୋଇଥିଲେ ଆଉ ବିଚାରର ଦୋଷୀ ସାବ୍ୟସ୍ତ ହୋଇ ଜେଲ ଯାଇଥିଲେ ।

ଗୌରୀଶଙ୍କର ରାୟଙ୍କ ଦ୍ୱାରା ପ୍ରକାଶିତ ଉତ୍କଳ ଦୀପିକା ୧୮ ଜୁଲାଇ ୧୮୯୨ ପ୍ରକାଶିତ ହୋଇଥିଲା ଧରଣୀଧର ଆନ୍ଦୋଳନ ସଂପର୍କରେ । ତାହାହେଲେ କେନ୍ଦୁଝର ବିଦ୍ରୋହ ବା ମେଳିର ଯେଉଁ ବିବରଣୀ ପ୍ରକାଶ କରିଅଛୁଁ ତହିଁରୁ ପ୍ରକାଶ ଯେ, ମହାରାଜାଙ୍କ ଅତ୍ୟାଚାରରେ ତାହାଙ୍କର କୌଣସି ଅନିଷ୍ଟ କରିବା କିମ୍ବା ଆପଣମାନଙ୍କର କିଛି ଅନ୍ୟାୟ ଲାଭ କରିବା ମେଳିଆଙ୍କର ଉଦ୍ଦେଶ୍ୟ ନଥିଲା । କୌଣସି ସ୍ଥଳେ ଲୁଟ୍‌ପାଟ ହେଲା, ମାତ୍ର ତାହା ମେଳିର ଏକ ଅଂଶ ନୁହେଁ । କେବଳ ଦୁଷ୍ଟଲୋକ ତହିଁରେ ପ୍ରବୃତ୍ତ ଆଉ ଯେଉଁମାନଙ୍କ ପ୍ରତି ୱାରେଣ୍ଟ ହୋଇଛି ଓ ଧରାପଡି ବିଚାରରେ ଏହି ଅପରାଧରେ ଲିପ୍ତଥିବା ଯଥାର୍ଥରୁ ପରେ ଦଣ୍ଡର ଯୋଗ୍ୟ ମାତ୍ର ଧରଣୀଧର ଓ ତାହା ସଙ୍ଗରେ ଅପରାଧିମାନଙ୍କ କଥା ଭିନ୍ନ ଅଟେ । ମହାରାଜାଙ୍କର ଅତ୍ୟାଚାର ନିବାରଣ କରିବା ତାହାର ଏକମାତ୍ର ଉଦ୍ଦେଶ୍ୟ ସାଧନ ନିମନ୍ତେ କରିଅଛି । ସେ କାହାରିକୁ ହତ୍ୟା କରିନାହିଁ ଲୁଟ୍‌ପାଟ କରିବା ବା ପୀଡା ଦେବାକୁ ଆଦେଶ ଦେଇନାହିଁ । ଫକୀରମୋହନ ବାବୁଙ୍କୁ ଧରିନେଇ ସୁଦ୍ଧା ତାହାଙ୍କୁ ଅଯତ୍ନ କରିନାହିଁ ଏବଂ ସରକାରୀ ପୋଲିସ୍ ପହଞ୍ଚିବାରୁ ସ୍ୱଚ୍ଛପୂର୍ବକ ଉପସ୍ଥିତ ହୋଇ ଆତ୍ମସମର୍ପଣ କରିଅଛି । ଏପରି ଲୋକ ଯେ ସାଧାରଣ ଉପକାରୀ ଏବଂ ହିତୈଷୀ ଏଥରେ ସନ୍ଦେହ ନାହିଁ।

କେନ୍ଦୁଝର ଧରଣୀଧର ବିଦ୍ରୋହ ମହାଶକ୍ତିଶାଳୀ ଇଂରେଜ ସରକାରଙ୍କର ଆଖିଖୋଲି ଦେଇଥିଲା । ରାଜ୍ୟରେ ନୂତନ ବନ୍ଦୋବସ୍ତ ପ୍ରଚଳନ ହୋଇଥିଲା ପ୍ରଜାମାନଙ୍କ ଉପରେ କରଭାର ଲାଘବ କରାଯାଇଥିଲା, କେନ୍ଦୁଝରରେ ରସଦ, ମାଗଣ ବେଠି, ଜୁଲୁମ୍ ଇତ୍ୟାଦି ରଦ୍ଦ କରାଗଲା । କେନ୍ଦୁଝର ରାଜା ଧନଞ୍ଜୟ ଭଞ୍ଜଙ୍କୁ ମାସିକ ୩୦୦/-ଟଙ୍କା ଭତ୍ତାଦେଇ କଟକରେ ରହିବାପାଇଁ ନିର୍ଦ୍ଦେଶ ଦିଆଗଲା । ଫକୀରମୋହନ ସେନାପତିଙ୍କ ରାଜାଙ୍କ ନିର୍ଦ୍ଦେଶରେ

୧୮୯୨ ମସିହା ମଧ୍ୟରାତ୍ରରେ କେନ୍ଦୁଝରର ସୀମା ବସନ୍ତିଆଠାରେ ଛାଡି ଦିଆଗଲା ।

୧୮୯୭ ମସିହା ଅକ୍ଟୋବର ମାସରେ କଟକ ଜେଲରୁ ମୁକ୍ତିଲାଭ କଲେ ବିପ୍ଳବୀ ଧରଣୀଧର । ଧରଣୀଧର କେନ୍ଦୁଝରକୁ ଆସିଲେ ପୁଣି ଆଉଥରେ ବିଦ୍ରୋହ ହେବାର ସନ୍ଦେହ କରି ଗଭର୍ଣ୍ଣମେଣ୍ଟ ତାଙ୍କୁ କଟକରେ ରହିବା ପାଇଁ ଆଦେଶ ଦେଇଥିଲେ ଓ ତାଙ୍କର ଜୀବନ ନିର୍ବାହ ପାଇଁ ତାଙ୍କୁ ମାସିକ ୮ଟଙ୍କା ରାଜ ଭତ୍ତା ଦେବାପାଇଁ ଗଭର୍ଣ୍ଣମେଣ୍ଟ ପକ୍ଷରୁ ଆଦେଶ ହୋଇଥିଲେ ମଧ୍ୟ ଧରଣୀଧର ସେ ଟଙ୍କାକୁ ଗ୍ରହଣ କରୁନଥିଲେ । ଧରଣୀଧର ତାଙ୍କ ଜୀବନର ଅର୍ଦ୍ଧାଧିକ ସମୟ ସନ୍ୟାସ ବ୍ରତ ଗ୍ରହଣ କରି ତ୍ୟାଗପୂତ ଜୀବନ ନିର୍ବାହ କରିଥିଲେ । ଭାରତର ସ୍ୱାଧୀନତା ସଂଗ୍ରାମ ସମୟରେ ଉତ୍କଳର ବରେଣ୍ୟ ନେତା ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ ମହାତ୍ମା ଧରଣୀଧରଙ୍କୁ ସାକ୍ଷାତ କରି ଆନ୍ଦୋଳନରେ ସେମାନଙ୍କର ଭୂମିକା ସଂପର୍କରେ ପରାମର୍ଶ ଲୋଡିଥିଲେ । ଧରଣୀଧର ଉତ୍କଳର ଏହି ବରେଣ୍ୟ ସନ୍ତାନମାନଙ୍କୁ ଜାତୀୟ କଂଗ୍ରେସରେ ସାମିଲ ହୋଇ ଭାରତର ମୁକ୍ତି ସଂଗ୍ରାମ କରିବାକୁ ସୁପରାମର୍ଶ ଦେଇଥିଲେ । ଏହା ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କ ଜୀବନୀରେ ଉଲ୍ଲେଖ କରିଛନ୍ତି । ଧରଣୀଧରଙ୍କ ମୁଖ୍ୟ ବିଚାର ଥିଲା ରାଜତନ୍ତ୍ର ଶାସନର ବିଲୋପ ସହିତ ବିଦେଶୀମାନଙ୍କୁ ହଟାଇ ଗଣତନ୍ତ୍ରର ପ୍ରତିଷ୍ଠା କରିବା ।

ଶେଷ ଜୀବନ କଟିଥିଲା ଆଳିରାଜ୍ୟରେ । ତାଙ୍କ ବିଷୟରେ ଲୋକମୁଖରୁ ଅନେକ କଥା ଶୁଣାଯାଏ । ସେଠାକାର ଜନସାଧାରଣ ତାଙ୍କୁ ଜଣେ ଅଲୌକିକ ବ୍ୟକ୍ତିତ୍ୱ ଭାବରେ ପ୍ରଚାର କରିଥିଲେ । ସେମାନଙ୍କର ବିଶ୍ୱାସ ଥିଲା ଧରଣୀଧର ହେଉଛନ୍ତି ତ୍ରିକାଳଦର୍ଶୀ । ଆଗତ ଭବିଷ୍ୟତ କଥା ସଠିକ୍ କହିପାରନ୍ତି । ଆଳିରାଜା ଧରଣୀଧରଙ୍କଠାରୁ ବ୍ୟାଘ୍ର ବଶୀକରଣର ବିଦ୍ୟା ଶିଖିଥିବାର କଥା ଆଳି ଅଂଚଳରେ ଶୁଣାଯାଏ । ରାଜବାଟୀ ପରିସରରେ ଥିବା ଏକ ପୁଷ୍କରିଣୀ ଭିତରେ ଏହି ବିପ୍ଳବୀ ସଦା ମୌନବ୍ରତ ଧାରଣ କରି ରହୁଥିଲେ । ସେହି ପଥଦେଇ ଯିବାଆସିବା କରୁଥିବା ଲୋକମାନଙ୍କର ଆକୁଣ୍ଠିତ ଦାନ ଦ୍ୱାରା ସେ ଜୀବନ ପ୍ରତି ପୋଷଣ କରୁଥିଲେ କୁସୁମିତାରେ ବାସ କରୁଥିବା ତାଙ୍କ ଜ୍ଞାତିକୁଟୁମ୍ବ ଓ ଭୂୟାଁ ସାଂସ୍କୃତିକ ଅନୁଷ୍ଠାନର ତଥ୍ୟ ମୁତାବକ ବିପ୍ଳବୀ ବୀର ଧରଣୀଧର ୧୯୪୪ ମସିହା ବୈଶାଖ ପୂର୍ଣ୍ଣିମା ଦିନ ଇହଲୀଳା ସମ୍ବରଣ କରିଥିଲେ ।

କୁସୁମିତା ଗ୍ରାମରୁ ଧୂଳିଖେଳରୁ ଆଳି ରାଜ୍ୟରେ ସନ୍ୟାସୀ ଜୀବନ ପର୍ଯ୍ୟନ୍ତ ତାଙ୍କର ଜୀବନଯାତ୍ରା । ଉଚ୍ଚଶିକ୍ଷିତ, ବିଚାରବନ୍ତ ସ୍ୱାଭିମାନୀ ଏହି ଆଦିବାସୀ ନେତା ବିପ୍ଳବୀ ଧରଣୀଧର କେବଳ କୁସୁମିତା ଗ୍ରାମର ଲକ୍ଷ୍ମଣ ନାଏକ ଓ ବାଇଗଣୀ ଦେବୀଙ୍କର ପୁତ୍ର ନୁହଁନ୍ତି ସେ ହେଉଛନ୍ତି ସମଗ୍ର ଦଳିତ ନିଷ୍ପେଷିତ ଅବହେଳିତ ଜନମାନସର ପ୍ରତିନିଧି । ସେ କେବଳ ଜଣେ ବ୍ୟକ୍ତି ନୁହଁନ୍ତି ସେ ଏକ ଅନୁଷ୍ଠାନ । ଧରଣୀଧର ଜଣେ ବକ୍ତିର ନାମ ନୁହେଁ ଏକ ବିପ୍ଳବର ନାମ । ଧରଣୀଧର ଏକ ଆହ୍ୱାନ, ଧରଣୀଧର ଏକ ଚେତନା । ଚେତନାର ମୃତ୍ୟୁ ନାହିଁ, ବିପ୍ଳବର ମୃତ୍ୟୁ ନାହିଁ ବିପ୍ଳବୀର ମଧ୍ୟ ମୃତ୍ୟୁ ନାହିଁ । ଧରଣୀଧର ମୃତ୍ୟୁ ଆଳି ରାଜ୍ୟର ପୁଷ୍କରିଣୀ ଭାଡି ଭିତରେ ହୋଇନପାରେ, ସେ ବଞ୍ଚିଛନ୍ତି ପ୍ରତିଟି ଦୁଃଖୀ ନିଷ୍ପେଷିତ, ଅବହେଳିତ ହୃଦୟ ଭିତରେ ।

**ସହାୟକ ଗ୍ରନ୍ଥସୂଚୀ**


୧. ଶ୍ରୀ ଭଂଜଭୂମି କେନ୍ଦୁଝରୀ-ବିପିନ ବିହାରୀ ଦାସ ,ନିଳାଚଳ ପ୍ରକାଶନ, ବଡବିଲ, କେନ୍ଦୁଝର, ପ୍ରଥମ ମୁଦ୍ରଣ- ୧୯୮୯ ।

୨. ଉତ୍ଥାନ ପାଦ- କ୍ଷେତ୍ରବାସୀ ଦାସ, ଦିବ୍ୟ ମୁଦ୍ରଣୀ, ଦିବ୍ୟବିହାର, ସମନ୍ତରାପୁର ପ୍ରଥମ ପ୍ରକାଶନ, ୨୦୧୧।